# ଉତ୍ସର୍ଗ ପତ୍ର ।

ପରମ କଲ୍ୟାଣାସ୍ପଦ ଶ୍ରୀମାନ ଶ୍ରୀବ୍ରଜବନ୍ଧୁ ମହାପାତ୍ର
ଜମିଦାର ମହାଶୟ                    କରକମଳେଷୁ ।
[ ବୈଦେଶ୍ୱର, ବାଙ୍କୀ, କଟକ । ]

ସାଶୀର୍ବ୍ବାଦ ବିଜ୍ଞାପନ ।

ଆୟୁଷ୍ମନ୍ । ଯୌବନ ଏବଂ ଧନ - ସମ୍ପତ୍ତି ପ୍ରଭୃତିକେ ଯେପରି କଲ୍ୟାଣପ୍ରଦ, ସେହିପରି ବହୁଧ ଅନର୍ଥର କାରଣ ; ଅପରିଣାମଦର୍ଶୀ ଯୁବକମାନେ କୁଚରିତ୍ର ଏବଂ ଚାଟୁକାରମାନଙ୍କଦ୍ୱାରା ସର୍ବ୍ବଦା ଅବେଷ୍ଟିତ ହୋଇ ରହିଲେ ପରେ ଦାରୁଣ ଦୁର୍ଦ୍ଦଶା ଭୋଗକରିଥାନ୍ତି । ଯେଉଁମାନେ ଧନୀ ଓ ଯୁବକ ହୋଇମଧ୍ୟ ଉକ୍ତ ଉଭୟବିଧ ଦୋଷରୁ ମୁକ୍ତ ସେମାନେ ପ୍ରକୃତ ମନୁଷ୍ୟପଦ ବାଚ୍ୟ । କବି ଯଥାର୍ଥ କହିଅଛନ୍ତି —

ଧନିନୋଽପି ନିରୁନ୍ମାଦା ଯୁବାନୋଽପି ନଚଞ୍ଚଳାଃ
ପ୍ରଭବୋଽପ୍ୟପ୍ରମତ୍ତାସ୍ତେ    ମହାମହିମଶାଳିନଃ ।

ତୁମ୍ଭେ ଚରିତ୍ରର ବିଶୁଦ୍ଧତାରକ୍ଷା, ସାଧୁଙ୍କ ସ୍ୱଭାବରେ କର୍ତ୍ତବ୍ୟ ପାଳନ, ଦେଶପ୍ରତି ପ୍ରୀତିଭାବ

ପୋଷଣ, ଗୁରୁଜନମାନଙ୍କ ପ୍ରତି ଭକ୍ତି ପ୍ରଦର୍ଶନ ଏବଂ ନାନାଦି ସଦ୍‌ଗ୍ରନ୍ଥ ସଂଗ୍ରହ ଓ ପାଠକରି ଜ୍ଞାନାର୍ଜନ କିଶୋରାବସ୍ଥାରେ ସଦାଅନୁରକ୍ତ । ଏହିସବୁ କାରଣରୁ ମୁଁ ପରମ ପ୍ରୀତହୋଇ ଏହି "ହରି ମନ୍ଦିର" ଗ୍ରନ୍ଥ ତୁମ୍ଭ ନାମରେ ଉତ୍ସର୍ଗ କଲି । ଆଶାକରେ ଏହାକୁ ସଶ୍ରଦ୍ଧ ଚିତ୍ତରେ ଗ୍ରହଣ କରିବ ।

ଶୁଭଚିନ୍ତକ

ଶ୍ରୀନୀଳମଣି ବଦ୍ଧାରହ

# ହରିମନ୍ଦିର ।

ଦାମ୍ପତ୍ୟଭକ୍ତିର୍ଯଥାସାକ୍ଷା ଜୀବ ନିସ୍ତାର - କାରଣୀ
ଗୃହିଣୀ ସ୍ୱଜନେ ଯତ୍ର ତତ୍ରୈବ ରମତେ ହରିଃ । ୧ ।

ମୂର୍ତ୍ତିମତୀ ଦାମ୍ପ ଭକ୍ତି ସମତା ଗୃହିଣୀ
ଜଗତେ ଯେସନେ ସର୍ବ୍ବଜୀବ ନିସ୍ତାରିଣୀ
ଗୃହସ୍ଥ ଆଶ୍ରମ ସେହି ପୁଣ୍ୟ ନିକେତନ
ନିତ୍ୟ ବିରାଜନ୍ତି ତହିଁ ଦେବ ନାରାୟଣ । ୧ ।

ପୁଣ୍ୟବ୍ରତୋ ଗୃହସ୍ଥଶ୍ଚ ଗୃହିଣୀଚ ପତିବ୍ରତା
ପିତୃ ଭକ୍ତାଶ୍ଚ ସନ୍ତାନାସ୍ତତ୍ରୈବ ରମତେ ହରିଃ । ୨

ଯେଉଁ ଗୃହେ ଗୃହସ୍ଥ ସଦା ପୁଣ୍ୟକର୍ମ୍ମେ ରତ
ପତିମାନ ଗୃହିଣୀର ଜୀବନର ବ୍ରତ
ପିତୃଭକ୍ତ ଗୁଣବାନ ଯେଉଁ ଗୃହେ ସନ୍ତାନ
ସେସ୍ଥାନେ କରନ୍ତି ହରି ନିତ୍ୟ ଅଧିଷ୍ଠାନ । ୨

ଅତିଥ୍ୟଂ ଗୁରୁଭକ୍ତିଶ୍ଚ ପାତିବ୍ରତ୍ୟଂ ଦୟାର୍ଜ୍ଜବଂ
ସତ୍ୟଂ ଶୌଚଂ କ୍ଷମାଯତ୍ର ତତ୍ରୈବ ରମତେ ହରିଃ । ୩ ।

ସତୀତ୍ୱ ଆତିଥ୍ୟ ଦୟା, ଭକ୍ତି ଗୁରୁଜନେ
ସତ୍ୟ ଶୌଚ ସରଳତା କ୍ଷମା ଯେ ଭବନେ
ସେଗୃହ ଧର୍ମ୍ମର କ୍ଷେତ୍ର ଶାନ୍ତିର ଆଧାର
[illegible] ସେଗୃହେ ସଦା କରନ୍ତି ବିହାର । ୩

ଅରିଷଡ୍ ବର୍ଗ ଦମନଂ ଦୀନୋପଗତ ରକ୍ଷଣଂ
ସର୍ବଭୂତାରଦ୍ଧଂ ଯତ୍ର ତତ୍ରୈବ ଜମତେହରିଃ । ୪ ।

ଯେସ୍ଥଳେ ଷଡ଼୍ ରିପୁ ଲଭେ ପରାଜୟ
ଅଭ୍ୟାଗତ ଦୀନଜନ ଲଭନ୍ତି ଆଶ୍ରୟ
ଯହିଁ ଅସି ସର୍ବଜୀବ ଲଭନ୍ତି ଅଭୟ
ବିହରନ୍ତି ନିତ୍ୟ ତହିଁ ହରି ଦୟାମୟ । ୪ ।

ପିତାମାତା ଗୁରୁଃପତ୍ନୀ ଭ୍ରାତରୋ ବାନ୍ଧବାସ୍ତଥା
ଯତ୍ରୈତେ ନିତ୍ୟସନ୍ତୁଷ୍ଟା ସ୍ତତ୍ରୈବ ରମତେହରିଃ । ୫

ପିତା ମାତା ଗୁରୁପତ୍ନୀ କୁଳବନ୍ଧୁ ମନେ
ଲଭନ୍ତି ଅତୁଳତୃପ୍ତି ନିତ୍ୟ ଯେ ଭବନେ ।
ରହନ୍ତି ଆନନ୍ଦେ ଯଥା ଜ୍ଞାତି ବନ୍ଧୁଗଣ
ନିତ୍ୟ ବିହରନ୍ତି ତଥା ଦେବ ନାରାୟଣ । ୫

ମୋଦନ୍ତେ ଶିଶବୋ ଯତ୍ର ମୋଦନ୍ତେଚ ଗୃହେଙ୍ଗନାଃ
ତିର୍ଯ୍ୟଞ୍ଚୋପି ପ୍ରମୋଦନ୍ତେ ତତ୍ରୈବ ରମତେହରିଃ । ୬ ।

ଯେଉଁସ୍ଥଳେ ଶିଶୁଗଣ ପ୍ରଫୁଲ୍ଲ-ବଦନ
ପ୍ରଫୁଲ୍ଲ-ବଦନ ଯହିଁ କୁଳ ନାରୀଗଣ
ପଶୁ ପକ୍ଷୀଗଣ ଯଥା ପ୍ରମୋଦିତ ମନ
ସତତ ଶ୍ରୀହରି ତହିଁ କରନ୍ତି ରମଣ । ୬

ଶବ୍ଦାନ୍ନଂ ଗୃହିଣୀ ଦତ୍ତଂ ଭୁଞ୍ଜତେ ସର୍ବ ଜନ୍ତବଃ ।
ପ୍ରୀତ୍ୟା ଯତ୍ର ଗୃହେଶତ୍ୟଂ ତତ୍ରୈବ ରମତେହରିଃ । ୭

ଯେଗୃହେ ଗୃହସ୍ଥ ହର୍ଷେ ଭକ୍ତିପୂର୍ଣ୍ଣ ମନେ
ଅନ୍ନଦାନ-ମହାଦାନ କରେ ଅତିଥିଗଣେ
ସକଳେ ଆନନ୍ଦେ ଯହିଁ କରନ୍ତି ଆହାର
ସେଗୃହେ ଶ୍ରୀହରି ସଦା କରନ୍ତି ବିହାର । ୭ ।

ଯତ୍ର ତୃପ୍ତୋ ଽ ତିଥିର୍ଦାନାମିଭ ନିତ୍ୟଂ ପ୍ରବର୍ତ୍ତତେ
ଯତ୍ରାନନ୍ଦରବୋଗେହେ ତତ୍ରୈବ ରମତେହରିଃ । ୮ ।

"ଅହା ହୋଇଲ ମୁ ତୃପ୍ତ" ଏଆନନ୍ଦରବେ
ଯେଗୃହ କରନ୍ତି ପୂର୍ଣ୍ଣ ମାନବାଦି ସବେ ।
ସୁଖର ଶାନ୍ତିର ସ୍ଥାନ ଧନ୍ୟସେ ଭବନ
ନିତ୍ୟ ବସନ୍ତି ଯହିଁ ଶ୍ରୀମଧୁସୂଦନ । ୮ ।

ଅଦ୍ୱୈତ ଭକ୍ତିସୂତ୍ରେଣ ବଦ୍ଧାଯତ୍ର ଗୃହେଜନାଃ
ସର୍ବେ ଽ ଭିନ୍ନମନଃ ପ୍ରାଣାସ୍ତତ୍ରୈବ ରମତେହରିଃ । ୯

ପତିପତ୍ନୀ ପୁତ୍ର ଭୃତ୍ୟ ଆଦି ପରିଜନେ
ଅଦ୍ୱୈତ ଭକ୍ତିସୂତ୍ରେ ବନ୍ଧିଯେ ଭବନେ ।
ସମସ୍ତଙ୍କ ମନ ଏକ ଏକ ଅଟେ ପ୍ରାଣ
ଶ୍ରୀହରି କରନ୍ତି ତଥା ନିତ୍ୟ ଅଧିଷ୍ଠାନ । ୯

ଯତ୍ର କାର୍ଯ୍ୟପ୍ରଭେଦେନ ସଂସାରେ ବର୍ତ୍ତତେ ଗୃହୀ
ଧର୍ମ୍ମଂ ଚରତି ନିଷ୍କାମଂ ତତ୍ରୈବ ରମତେ ହରିଃ । ୧୦

କାର୍ଯ୍ୟ ପ୍ରଭେଦେ ସଂସାରେ ଯେଉଁ ଗୃହୀଜନ
ଧର୍ମ୍ମକାର୍ଯ୍ୟ କରୁଥାଏ ସମସ୍ତ ଯାପନ ।

ଧର୍ମ୍ମାମେ ଏତସ୍ମାତ୍ ଧନ୍ୟା ତା ସଦନ
ନିତ୍ୟ ବସନ୍ତି ତହିଁ ଦେବନାରାୟଣ । ୧୦
ଗୃହିଣୀଯତ୍ରାଖିଳ – କ୍ଲେଶାନ୍ ଲୀଳୟା ସହତେ ସ୍ୱୟଂ
ହରତ୍ୟାର୍ତ୍ତିଂ ସନ୍ତାପଂ ତଦ୍ଦୈବ ରମତେହରିଃ । ୧୧ ।
ଅଶେଷ କ୍ଲେଶର ଭାର ଗୃହିଣୀ ଯେ ସଦନେ
ଅଗ୍ରହେ କରଇ ସହ୍ୟ ଅମ୍ଳାନବଦନେ ।
ପ୍ରାଣପଣେ ଆର୍ତ୍ତିତର ହରେ ଦୁଃଖଭାର
ନିତ୍ୟତହିଁ ନାରାୟଣ କରନ୍ତି ବିହାର । ୧୧ ।
ପତିଶ୍ରମୋ ନିତାନ୍ତେଶ୍ରେ ଯତ୍ରଧର୍ମ୍ମେଣ ଶିକ୍ଷକା
ଦେବାତିଥି ଗୁରୁଶ୍ରଦ୍ଧା ତଦ୍ଦୈବ ରମତେହରିଃ । ୧୨
ଧର୍ମ୍ମପଥେ ଅପୃ ପତିଶ୍ରମ ନିତାନ୍ତର
ଦେବତା ଅତିଥି ଗୁରୁପୂଜା ଯହିଁ ସାର ।
ପରମ ପବିତ୍ର ସେହି ଗୃହସ୍ଥ ଭବନ
ନିତ୍ୟ ବସନ୍ତି ତହିଁ ଦେବ ନାରାୟଣ । ୧୨
ସ୍ତ୍ରୀୟତ୍ର ଲଳିତା ଯତ୍ର ଧେନବୋ ନିତ୍ୟ ଦୁଗ୍ଧଦାଃ
ସୁପୁଷ୍ପ ଫଳଦା ବୃକ୍ଷାସ୍ତଦ୍ଦୈବ ରମତେହରିଃ । ୧୩ ।
ଯତନେ ଲାଳିତହୋଇ ଯହିଁ ଧେନୁଗଣ
ସୁଧାସମ କ୍ଷୀରଧାରା କରନ୍ତି ବର୍ଷଣ ।
ଫଳପୁଷ୍ପ ସୁଶୋଭିତ ଯହିଁ ତରୁଗଣ
ସେ ଗୃହେ ସତତ ହରି କରନ୍ତି ରମଣ । ୧୩

ସୁସଂସ୍କୃତେ ସୁସଂମୃଷ୍ଟେ ଯଦ୍‌ଗୃହେ ସର୍ବତଃ ଶୁଚୌ
ବିଶୁଦ୍ଧାନ୍ୟନ୍ନ ପାନାନି ତତ୍ରୈବ ରମତେହରିଃ । ୧୪ ।

ପରିଷ୍କୃତ ପରିଚ୍ଛନ୍ନ ହୁଏ ଯେ ଭବନ
ପବିତ୍ର ପାନୀୟ ଶଯ୍ୟା ଅଶନ ବସନ ।
ଯହିଁ ନାମ ଗନ୍ଧ ନାହିଁ ଅଶୁଚିଦ୍ରବ୍ୟର
ବିରାଜନ୍ତି ସେସ୍ଥାନେ ପ୍ରଭୁ ଚକ୍ରଧର । ୧୪ ।

ସର୍ବଂ ଯଦାନ୍ନ ପାନାଦ୍ୟ ଗୃହୀ ଦ୍ରଷ୍ଟୁ ନିବେଦିତଂ
ପରିବାରୈର୍ନିତ୍ୟୋଭୁଙ୍କ୍ତେ ତତ୍ରୈବ ରମତେହରିଃ । ୧୫ ।

ଅନ୍ନପେୟ ଆଦି ଦ୍ରବ୍ୟ ଗୃହୀ ଯେ ଭବନେ
ଭକ୍ତିଭାବେ ନିବେଦନ କରେ ନାରାୟଣେ ।
ପଶ୍ଚାତ ସକଳେ ମିଳି କରନ୍ତି ଆହାର
ସେଗୃହେ ଶ୍ରୀହରି ସଦା କରନ୍ତି ବିହାର । ୧୫ ।

ଯତ୍ରେ ମହତ୍ତ୍ୱ ବୁଦ୍ଧିର୍ନ ମମତା ଯସ୍ୟ ଗେହିନଃ
ନୈର୍ବାସ୍ତ୍ୟ ପରଜ୍ଞାନଂ ତତ୍ରୈବ ରମତେହରିଃ । ୧୬ ।

ଗୃହୀଯଥା ବର୍ତ୍ତମାନ ନକରି ବିଗ୍ରହ
ସମସ୍ତଙ୍କୁ ସମଭାବେ ଭାବେ ଆପଣାର ।
ଆତ୍ମପର ଭେଦଜ୍ଞାନ ନାହିଁ ଯେ ସଦନ
କରନ୍ତି ବିହାର ତହିଁ ଏହୁ ନାରାୟଣ । ୧୬

ଶାନ୍ତାନଂ ଧର୍ମ୍ମଶୀଲାନାଂ ସ୍ୱେଚ୍ଛାଦତ୍ତ ସ୍ୱଜନାଶ୍ରିତାନ୍
ଶେଷଂ ଯସ୍ୟ ଗୃହୀ ଭୁଙ୍କ୍ତେ ତତ୍ରୈବ ରମତେହରିଃ । ୧୭ ।

ଧର୍ମ୍ମପଥେ ଶାକଅନ୍ନ  କରିଅନ୍ୱେଷଣ
ଭୋଜନ କରାଏ ଯତ୍ନେ ଅତିଥି ସ୍ୱଜନ ।
ଯେଗୃହେ ଶେଷାନ୍ନ ଗୃହୀ କରଇ ଭୋଜନ
କରନ୍ତି ସେହିଗୃହେ ଦେବ ନାରାୟଣ । ୧୭

ଧେନୁର୍ଧାନ୍ୟଂ ପୁଷ୍କରଣୀ ଯତ୍ରାବନ୍ଧ୍ୟାଶ୍ଚ ପାଦପାଃ
ଅତିଥିଂ ଦମ୍ପତୀପ୍ରେମ ତତ୍ରୈବ ରମତେହରିଃ । ୧୮.

ଧାନ୍ୟ ଯଥା ସୁରକ୍ଷିତ ବୃକ୍ଷ ଫଳବାନ
ସ୍ୱଚ୍ଛ ଜଳାଶୟ ଧେନୁ ଦୁଗ୍ଧ କରେଦାନ ।
ଯେ ଗୃହେ ଦମ୍ପତିପ୍ରେମ ଅତିଥି ସତ୍କାର
ନିତ୍ୟ ତଥା ନାରାୟଣ କରନ୍ତି ବିହାର । ୧୮

ଅବ୍ରହ୍ମ ସ୍ତମ୍ବପର୍ଯ୍ୟନ୍ତ ଜଗତ୍ସନ୍ତର୍ପଣଃ ସଦା
ପ୍ରବର୍ତ୍ତତେ ଯତ୍ର ଯଜ୍ଞସ୍ତତ୍ରୈବ ରମତେହରିଃ । ୧୯

ବ୍ରହ୍ମଠାରୁ ପରମାଣୁ ଯାଏ ସବୁଙ୍କର
ତୃପ୍ତିର ଉଦ୍ଦେଶ୍ୟେ ଗୃହେ ନିତ୍ୟ ଯଜ୍ଞଯାର ।
ସର୍ବ୍ବଯଜ୍ଞେଶ୍ୱର ହରି ଭକ୍ତନେ ତାହାର
ସତତ ପରମାନନ୍ଦେ କରନ୍ତି ବିହାର । ୧୯

ବସୁନ୍ଧରେବ ଗୃହିଣୀ ଯତ୍ର ସର୍ବଂସହା ଗୃହେ
ସୁଖେ ଦୁଃଖେ ନିର୍ବ୍ବିକାରା ତତ୍ରୈବ ରମତେହରିଃ । ୨୦

ସୁଖେ ଦୁଃଖେ ନିର୍ବ୍ବିକାରା ଗୃହିଣୀଯେସ୍ଥାନ
ସବୁ ସହ୍ୟକରନ୍ତେ ଧରଣୀ ସମାନ ।

ଗୃହସ୍ଥ ଆଶ୍ରମ ସେହି ଆଶ୍ରମର ସାର
ଗୋଲୋକ-ବିହାରୀ ତଥା କରନ୍ତି ବିହାର ।୨୦

ଗୃହଣା ସ୍ନୂର୍ଯ୍ୟତେ ଯସ୍ୟ ସର୍ବକାର୍ଯ୍ୟେଷୁ ମାଧବଃ
ସମାହୃତେନ ଶ୍ରୁତନା ତସ୍ୟୈବ ରମତେ ହରିଃ । ୨୧

ଅଃଇ ପବନ୍ନ ଯେଉଁ ଗୃହୀ କାର୍ଯ୍ୟରେ
ହଉପବେ ସମାହୃତ ଯାହାର ହୃଦୟ ;
ସର୍ବକାର୍ଯ୍ୟେ କରେଯେତୁ ଶ୍ରୀହରିସ୍ମରଣ
ତା ସଦନେ ବସନ୍ତି ପ୍ରଭୁ ହାସ୍ୟପୂର୍ଣ । ୨୧

ପୁଣ୍ୟେ ତପୋବନେବାପି ଚଣ୍ଡାଳ ଭବନେଽଥବା
ଯତ୍ରୈବା କାନ୍ୟତେଭକ୍ତ୍ୟାତତ୍ରୈବରମତେହରିଃ । ୨୨

ଭୃଗୁକାଦି ମହର୍ଷିଙ୍କ ପୁଣ୍ୟ ତପୋବନ
ଅଥବା ଘୃଣିତ ଅତି ଚଣ୍ଡାଳ ଭବନ ।
ଯେବା ଯହିଁ ଭକ୍ତିଭାବେ କରେ ଆବାହନ
ବସନ୍ତି ସେହିସ୍ଥାନେ ବୈକୁଣ୍ଠ ରମଣ । ୨୨

କ୍ଷୁଧାର୍ତ୍ତୋଽନ୍ନଂ ତୃଷାର୍ତ୍ତୋଽମ୍ବୁ ଶୋକାର୍ତ୍ତୋ ଯଂ ସ୍ମରନ୍ତ୍ୟହୋ
ଲୋକୋଽବଶ୍ୟଂ ଚଲନ୍ତେ ତତ୍ରୈବ ରମତେହରିଃ । ୨୩

କ୍ଷୁଧାର୍ତ୍ତ ତୃଷାର୍ତ୍ତ ଯଥା ଲଭେ ଅନ୍ନପାନ
ଶୋକାର୍ତ୍ତର ହୁଏ ଯହିଁ ଶୋକର ନିର୍ବାଣ ।
ଯେ ଗୃହେ ଭକ୍ତାର୍ତ୍ତଙ୍କ ଲଭନ୍ତି ଅଭୟ
ନିତ୍ୟ ବସନ୍ତି ତହିଁ ଶ୍ରୀହରିଦୟାମୟ । ୨୩

ଶିରେନୈବ ଦ୍ଵେଷେଣ ଗଛୈ କୁର୍ବନ୍ତ୍ୟ ଶ୍ଛୈରପି କ୍ରିୟାଃ
ଚ୍ଛିଦ୍ରଯନ୍ତ ସଦାନନ୍ଦସ୍ତତ୍ରୈବ ବର୍ତ୍ତମଗତେ ଦିଷଃ । ୧୪

ଯେବ୍ପ୍ରକ୍ଷେ ଚୃହସ୍ଥ କାର୍ଯ୍ୟ କରେ ସୁମହତ
ତଥାପି ସର୍ବସମୀପେ ଶିଚକରେ ନତ ।
ନଜାଣଇ ଅଜ୍ଞମାନେ ସଦାନନ୍ଦ ମତ
ଦ୍ଵସ୍ତନ୍ତ ସେ ଭବନେ କମଳାର ପତ । ୨୪

ସମାପ୍ତ ।

